# ଆମ ଲୋକ କଥା

## ପ୍ରଥମ ଭାଗ

ଲେଖକ

ଭାଗୀରଥି ନେପାକ

ପ୍ରକାଶକ :

**କୋଣାର୍କ ପବ୍ଲିଶର୍ସ**

ବିନୋଦ ବିହାରୀ, କଟକ-୨

# ଆମ ଲୋକ କଥା ( ପ୍ରଥମ ଭାଗ )

ଲେଖକ :

ଭଗୀରଥି ନେପାକ

ପ୍ରକାଶକ :

ଚନ୍ଦ୍ର ଶେଖର ପାଣ୍ଡ
କୋଣାର୍କ ପବ୍ଲିଶର୍ସ
ବିନୋଦବିହାରୀ, କଟକ ୨

ପ୍ରଥମ ପ୍ରକାଶ :

୧୯୮୭

ମୁଦ୍ରଣ :

କୋଣାର୍କ ପ୍ରିଣ୍ଟର୍ସ
ଖଟ୍‌ବିନ୍ ସାହି
କଟକ-୮

ମୂଲ୍ୟ : ୪-୧୫
( ଚାରିଟଙ୍କା ପନ୍ଦର ପଇସା ମାତ୍ର )

## ବହି ବିଷୟରେ

ଓଡ଼ିଶା ଏକ ବଡ଼ ଦେଶ । ଓଡ଼ିଶାର ଭାଷା ଓଡ଼ିଆ । ଓଡ଼ିଶାରେ ରହୁଥିବା ଲୋକ ଓଡ଼ିଆ । କିନ୍ତୁ ଏଥିରେ ଅନ୍ୟ ଲୋକମାନେ ବି ରହନ୍ତି । ଓଡ଼ିଆ ସଙ୍ଗରେ ସେମାନଙ୍କ ନିଜ ନିଜର ଭାଷା କହନ୍ତି । ଏହିପରି ଭାବରେ ଏଗାରଟି ଭାଷାର ଲୋକେ ଓଡ଼ିଶାରେ ରହନ୍ତି । ସେଥି ଭିତରୁ ଛଅଟି ଆଦିବାସୀ ଭାଷା ।

ଆଦିବାସୀମାନେ ଆଗରୁ ଓଡ଼ିଶାରେ ଥିଲେ । ପରେ ଅନ୍ୟମାନେ ଆସି ରହିଲେ । ଏବେ ମଧ୍ୟ ଏ ଦେଶରେ ପ୍ରାୟ ପ୍ରତି ଚାରିଜଣରେ ଜଣେ ଆଦିବାସୀ । ଓଡ଼ିଶା ଏକ ଆଦିବାସୀ ବହୁଳ ଦେଶ ।

ଆମ ଓଡ଼ିଶାରେ ବା'ଷଠି ପ୍ରକାର ଆଦିବାସୀ । ରହନ୍ତି । ସେମାନଙ୍କ ମଧ୍ୟରେ ଶବର, କନ୍ଧ, କୋଲ୍ହ, ଗଣ୍ଡ, ବଂଝାଲି, ଗଣ୍ଡ ଆଦି ଜାତି ପ୍ରଧାନ ।

ଆଦିବାସୀ ଓ ଅଣଆଦିବାସୀମାନେ ମିଶି ଏକାଠି ରହିଲେ । ଏମାନେ ତାଙ୍କଠାରୁ କିଛି ଶିଖିଲେ ସେମାନେ ଏମାନଙ୍କଠାରୁ କିଛି ଶିଖିଲେ । ଆମ ଓଡ଼ିଆ ଭାଷା, ଚାଲିଛି ଦୁଇର ମିଶାମିଶି ।

'ଲୋକକଥା' ହେଲା ଲୋକଙ୍କର କଥା । ଏହା ଲୋକ ମୁଖରେ ଥାଏ । ଲେଖା ହୋଇ ନ ଥାଏ । ପିଲାମାନେ ବଡ଼ମାନଙ୍କ ଠାରୁ ମନେ ରଖନ୍ତି । ପୁଣି ସେମାନେ ଅନ୍ୟ-ମାନଙ୍କୁ ଶୁଣାନ୍ତି । ଏହିପରି ଭାବରେ ଲୋକକଥା ପୁରୁଷ ପୁରୁଷ ଧରି ଗଢ଼ିଚାଲେ ।

ଓଡ଼ିଶାରେ ଏପରି ଏକ ଠାଁ, ମନ୍ଦିର, ପାହାଡ଼, ଦେବ-ଦେବୀ ନାହିଁ, ଯାହା ଉପରେ ଲୋକ କଥା ନାହିଁ । ଶୁଣା କଥା, ଦେଖା କଥା, ପଢ଼ା କଥା, ଜଣା କଥା···ସବୁ କଥାକୁ ନେଇ ଲୋକକଥା ।

କଥାରେ ଅଛି—

କହି ଜାଣିଲେ କଥା ସୁନ୍ଦର
ବାନ୍ଧି ଜାଣିଲେ ମଥା ସୁନ୍ଦର ।

ଇଏବି ଏକ ଲୋକ କଥା ।

ତେବେ ଲୋକକଥା ସବୁ ସତ ବୋଲି କୁହାଯାଇ ନପାରେ । ଲୋକେ ବିଶ୍ୱାସ କଲାପରି ଏହା କୁହାଯାଏ । କିନ୍ତୁ ସବୁତକ ମିଛ ବୋଲି କହି ଉଡ଼ାଇ ଦିଆଯାଇ ପାରିବ ନାହିଁ । ଲୋକକଥାରୁ ଅସଲ ସତ କଥା ବାହାରେ ।

ଓଡ଼ିଶାର ବହୁ ଅଞ୍ଚଳରେ ଲୋକ କଥା ଏକାଠି କରି ଲୋକଙ୍କ ପାଖକୁ ପଠାଇଛି । ଭାବୁଛି, ଏହା ସମସ୍ତଙ୍କୁ ଆନନ୍ଦ ଦେବ ।

ଲେଖକ

# ସୂଚୀ


| ବିଷୟ | ପୃଷ୍ଠା |
| --- | --- |
| ବୁଢ଼ୀ ଲଙ୍କାମରିଚ ଗଛ ହେଲା | ୧ |
| ମଣିଷ ଓ ପଶୁ | ୭ |
| କାଉ ରଙ୍ଗ କଳା ହେଲା | ୧୦ |
| ମାରୁ ଇନ୍ଦ୍ର ଧନୁ ହେଲା | ୧୫ |
| ମାଙ୍କଡ଼ ପଛ ଲାଲ ହେଲା | ୧୯ |
| ନିଆଁ କେମିତି ବାହାରିଲା .. | ୨୨ |
| ବାଘ ମଣିଷର ବଇରୀ ହେଲା | ୨୫ |
| ଦୁଇ ଭଉଣୀ କଥା | ୩୦ |




# ବୁଢ଼ୀ ଲଙ୍କାମରିଚ ଗଛ ହେଲା



ଶହ ଶହ ବର୍ଷ ତଳର କଥା—

ଓଡ଼ିଶାର ସମ୍ବଲପୁର ପଟେ ଗୋଟିଏ ଗାଁ ଥିଲା । ସେ ଗାଁର ନାଁ 'ବାଙ୍ଗରପାଣି' । ସେଇଠି ଆଦିବାସୀ ବିଞ୍ଝାଲମାନେ ରହୁଥିଲେ ।

ଗାଁ ମଝିରେ ବୁଢ଼ୀଟିଏ ରହୁଥାଏ । ସେ ବଡ଼ ସୁଖରେ ଥାଏ । ଘରେ ପୁଅ, ଝିଅ, ନାତି ନାତୁଣୀ । ବହୂମାନେ ଶାଶୁ ବୁଢ଼ୀକୁ ଭଲରେ ରଖିଥାନ୍ତି । ସେ ଯାହା କଲେ କେହି କିଛି କହନ୍ତି ନାହିଁ । ବୁଢ଼ା ବି ଖୁବ୍ ଭଲ ଲୋକ । ବୁଢ଼ୀକୁ ଆଦର କରୁଥାଏ ।

ବୁଢ଼ୀର କ୍ରମେ ଗରବ ବଢ଼ିଲା । ଗୋଟିଏ ଜାଗାରେ ବସି ରହିଲା । ସମସ୍ତଙ୍କୁ ଗାଳି ଗୁମାନ କଲା ।

ତାର କଥା ଶୁଣି ଗାଁ ଲୋକେ ବିରକ୍ତ ହେଲେ । ତା' ଘରକୁ ଯିବା ଆସିବା କଲେ ନାହିଁ । ଆଗ ପରି ଆଉ ତାକୁ ପ୍ରଶଂସା କଲେ ନାହିଁ ।

ବୁଢ଼ୀ ଗାଁ ଲୋକଙ୍କ ନାଁରେ ମିଛ ସତ କହି ବୁଲିଲା । ଏହା ଦେଖି ଗାଁ ଲୋକେ ତା କଥା ଶୁଣିଲେ ନାହିଁ । ତଥାପି ବୁଢ଼ୀର ଢଙ୍ଗ ବଦଳିଲା ନାହିଁ । ଘରେ ଧନର ଅଭାବ ନାହିଁ । ତେଣୁ ଲୋକଙ୍କୁ ପଚାରିଲା ନାହିଁ ।

ଦିନେ ହଠାତ୍ ବୁଢ଼ା ବେମାରରେ ଆରପାରିକୁ ଚାଲିଗଲା । ସେ ବର୍ଷ ଫସଲ ଭଲ ହେଇ ନ ଥାଏ । ଘରର ଖାଇବା ଜିନିଷ ସରିଗଲା । ପୁଅ ବୋହୂମାନେ କାମ କରି ପେଟ ପୋଷିବାକୁ ଯିଏ ଯୁଆଡ଼େ ଚାଲିଗଲେ । ସେମାନେ ଆଉ ବୁଢ଼ୀ ପାଖକୁ ଫେରିଲେ ନାହିଁ । ବୁଢ଼ୀର ଏଣିକି ମନ୍ଦ ଦଶା ପଡ଼ିଲା । ଦୁଃଖ ପରେ ଦୁଃଖ ମାଡ଼ି ଆସିଲା ।

ବୁଢ଼ୀ ଏକୁଟିଆ ବସି ଭାବି ହେଉଥାଏ । ଆହା, ଘରେ କେତେ ଲୋକ ଥିଲେ । କେତେ ଦରବ ଥିଲା । ଘରଟା ସବୁ କଥାରେ ପୂରିଥିଲା । ଏବେ କେହି ନାହିଁ । କିଛି ନାହିଁ । ସେ ଏକୁଟିଆ ବସିଛି । ଆଗକୁ ପଛକୁ କେହି ନାହାନ୍ତି ।

ବୁଢ଼ୀ ମନ ଦୁଃଖରେ ମହାଦେବ ଦେଉଳକୁ ଗଲା । ଠାକୁରଙ୍କୁ ମୁଣ୍ଡିଆ ମାରି ଦୁଃଖ ଜଣାଇଲା । କହିଲା, ହେ ଠାକୁର ! ଦୁଃଖ ନେଇ ସୁଖ ଦିଅ । ବୁଢ଼ୀ ହେଲିଣି । ଆଉ କେତେ ଦିନ ଜୀଇବି ! ଭଲରେ ଭଲରେ ଦିନ କଟିଯାଉ ।

ମହାଦେବ ଦେଉଳରେ ଥାଏ ମାଳି ପୁରୋହିତ । ବୁଢ଼ୀ ହାତରେ ପାଦୁକ ଦେଇଲେ । କହିଲେ, ଠାକୁରଙ୍କୁ

ମାନ । ଭଲ କାମ କର । ଭଲ କାମ କଲେ ଠାକୁର ଖୁସି ହେବେ । କାମଧାମରେ ମନ ଲଗାଅ । ପଛ କଥା ଭୁଲି ଯାଅ । ଭଲରେ ରହିବ ।

ବୁଢ଼ୀ ସେହି ଦିନଠୁ କାମଧାମ କଲା । ଗାଁ ଲୋକଙ୍କ ସଙ୍ଗରେ ମିଳିମିଶି ଚଳିଲା । କାହାରି ସଙ୍ଗରେ ଗାଳି ମନ୍ଦ ହେଲା ନାହିଁ । ଲୋକେ ପୁଣି ବୁଢ଼ୀ ଘରକୁ ଯିବା ଆସିବା କଲେ । ଭଲରେ ମନ୍ଦରେ ପଚାରିଲେ ।

ବରଷ ଦୁଇଟା ଭିତରେ ବୁଢ଼ୀର ଅବସ୍ଥା ବଦଳିଗଲା । ସେ ପୁଣି ଭଲରେ ରହିଲା । ବାଲବାଡ଼ି କଥା ବୁଝିଲା । ହଳ ହଳିଆ ରଖିଲା । ଗାଁ ଲୋକଙ୍କ ସଙ୍ଗରେ ମିଳିମିଶି ଚଳିଲା । ନିତିଦିନ ମହାଦେବଙ୍କୁ ଦର୍ଶନ କଲା । ଦାନ ପୁଣ୍ୟରେ ମନ ଦେଲା ।

ଏହିପରି କିଛି ଦିନ କଟିଗଲା । ପୁଣି ଯେଉଁ କଥା ସେହି କଥା । ବୁଢ଼ୀର ମନରେ ଗରବ ଆସିଲା । ଭାବିଲା, ସୁଖରେ ସୁଖରେ ଚଳିବ । ଆଉ ଦୁଃଖ ଯୋଗ ନାହିଁ । ଯାହା ଭୋଗିଥିଲା, କଟିଗଲା ।

ସେ ଏଣିକି ଖାଲି ଗରଗର ହେଲା । ଗାଁ ଲୋକଙ୍କୁ ଗାଳି ମନ୍ଦ କଲା । ଗାଁ ପିଲାଙ୍କୁ ପାଖ ପୂରାଇଲା ନାହିଁ । ବିପଦ ଆପଦରେ ସାହାଯ୍ୟ କଲା ନାହିଁ । ହଳ ବଳଦ ମାଗିଲେ ଦେଲା ନାହିଁ । ହାତ ଟେକି ଭିକ ମୁଠେ ବି ଦେଲା ନାହିଁ । କଳି କଜିଆରେ ଦିନ କାଟିଲା । କାମ ଧାମ ବି କଲା ନାହିଁ ।

ବୁଢ଼ୀର ବ୍ୟବହାର ଦେଖି ଗାଁ ଲୋକେ ରାଗିଲେ । ତାକୁ ଆଉ ଘରେ ପୂରାଇଲେ ନାହିଁ ।

ବୁଢ଼ୀ ନିଜ ଘରେ ପଡ଼ି ରହି ହକର ବକର ହେଉଥାଏ ।

କ୍ରମେ ସେ ଅନ୍ଧୁଣୀ ହୋଇଗଲା । ଏଥର ସେ ମହାଦେବଙ୍କୁ ବି ଗାଳି ଦେଲା ।

ମହାଦେବ ତାକୁ ସପନରେ ଦେଖାଦେଲେ । ସେ କହିଲେ, ଏ କ'ଣ କଲୁ ? ମାଳି ପୁରୋହିତର କଥା ମାନି



ଭଲରେ ଚଳୁଥିଲୁ । ସମସ୍ତେ ତୋତେ ଭଲ ପାଉଥିଲେ । ମୁଁ ତୋ ଉପରେ ଖୁସି ହୋଇ ତୋର ଭଲ କରୁଥିଲି । ଦିନ କେଇଟା ଭିତରେ ପୁଣି ବଦଳି ଗଲୁ । ସମସ୍ତଙ୍କ ସଙ୍ଗରେ କଳି କଜିଆ କଲୁ । କାହାର ଉପକାର କଲୁ ନାହିଁ ।

ପିଲାମାନଙ୍କୁ ମୁଁ ଭଲ ପାଏଁ । ସେମାନଙ୍କୁ ବ ପାଖରେ ପୂରାଇଲୁ ନାହିଁ । ତୋତେ ସମସ୍ତେ ଖରାପ କହିଲେ ।

ମହାଦେବ ପୁଣି କହିଲେ, ତୋ ଉପରେ ମୁ ଖୁସି ନୁହେ । ଯାହା କରିବୁ, ତାହା ପାଇବୁ । ମାଣ୍ଡିଆ ବୁଣି ଧାନ ପାଇବୁ କିପରି ? ଯିଏ ଖରାପ କାମ କରେ ତାକୁ ଦଣ୍ଡ ଭୋଗିବାକୁ ହୁଏ । ତୁ ଆର ଜନମରେ ଲଙ୍କା ଗଛ ହେବୁ ।

ମହାଦେବଙ୍କ କଥାରେ ବୁଢ଼ୀ ମଲାପରେ ଲଙ୍କା ମରିଚ ଗଛଟିଏ ହେଲା ।



# ମଣିଷ ଓ ପଶୁ

ସଉରମାନଙ୍କ ଦେବତା ହେଉଛନ୍ତି କଟିଂ । ସେ ସାରା ସଂସାର ଗଢ଼ିଛନ୍ତି ।

କଟିଂ ଆଗେ ପୃଥିବୀ ତିଆରି କରେ । ତାପରେ ପଶୁ ଓ ମଣିଷମାନେ ତିଆରିଲେ । ପଶୁ ଓ ମଣିଷମାନଙ୍କୁ ଏକାଠି ରଖିଲେ ।

ସେତେବେଳେ ପଶୁମାନେ କଥା କହି ପାରୁଥିଲେ । ପଶୁ ଓ ମଣିଷମାନେ ଏକାଠି ରହିଲେ । ଏକାଠି ରହି ସୁଖଦୁଃଖ ହେଲେ । ଭାଇ ଭାଇ ପରି ଚଳିଲେ ।

କିନ୍ତୁ ଥରେ ପଶୁ ଓ ମଣିଷମାନଙ୍କ ଭିତରେ କଳିଗୋଳ ହେଲା । ସେ କଳିଗୋଳ ବଢ଼ିବାକୁ ଲାଗିଲା । ମଣିଷମାନେ ପଶୁମାନଙ୍କୁ କଡ଼ାକଡ଼ା କଥା କହିଲେ । ପଶୁମାନଙ୍କୁ ଅପମାନ ହେଲା । ସେମାନେ ଆଉ ମଣିଷଙ୍କ ସଙ୍ଗେ ଏକାଠି ରହିବାକୁ ମନ କଲେ ନାହିଁ । ମଣିଷମାନେ ରହୁଥିବା ଘରଦ୍ୱାର, ଗାଁଗଣ୍ଡା ଛାଡ଼ି ବଣକୁ ଚାଲିଗଲେ ।

ପଶୁମାନେ ତେଣିକି ବଣରେ ରହିଲେ । ବଣ ସେମାନଙ୍କ ଘର ହେଲା ।

ସବୁଦିନ ସବୁକଥା ରହେନାହିଁ । ଆଜିର କଥା କାଲିକି ବାସି ହୁଏ ।

ଦିନ କେଇଟା ପରେ ମଣିଷ ଓ ପଶୁମାନେ ସେମାନଙ୍କ କଳିଗୋଳ କଥା ଭୁଲିଗଲେ ।

ପଶୁମାନେ ଆଗପର ମଣିଷଙ୍କ ସଙ୍ଗରେ କଥା ହେଲେ ମଣିଷମାନେ ବଣକୁ ଯିବାଆସିବା କଲେ ।

କିନ୍ତୁ ଥରେ କିଟିଂ ଦେବତା ବଣରୁ ମୂଷାଟିଏ ଧରି ଆଣି ସଉରମାନଙ୍କୁ ଦେଲେ । କହିଲେ, ମୂଷାକୁ କାଟି ମାଂସ କରି ଖାଅ ।

ଆଗରୁ ସଉରମାନେ ମୂଷା କି ପଶୁମାଂସ ଖାଉ ନଥିଲେ । କିନ୍ତୁ କିଟିଂ ଦେବତା କହିବାରୁ ମୂଷାକୁ କାଟି, ରାନ୍ଧି ଖାଇଲେ । ମୂଷା ମାଂସ ସୁଆଦ ଲାଗିଲା । ତେଣିକି ସେମାନେ ବଣରୁ ମୂଷାଧରି ଖାଇଲେ ।

ଆସ୍ତେ ଆସ୍ତେ ସଉରମାନଙ୍କ ମୂଷା ମାରି ଖାଇବା କଥା ଜଣାପଡ଼ିଗଲା । ପଶୁମାନେ ଏହା ଶୁଣି ଡରିଲେ । ଭାବିଲେ, ମଣିଷମାନେ ସେମାନଙ୍କୁ ବି ଖାଇଯାଇ ପାରନ୍ତି । ଏହାଭାବି ପଶୁମାନେ ମଣିଷଙ୍କୁ ଶତ୍ରୁ ବୋଲି ଭାବିଲେ ।

× ×

ଥରେ ଏକ ସଉରା ଯୁବକର ବାହାଘର ଠିକ୍‌ହେଲା । ବାହାଘର ପାଇଁ ସଉର ସ୍ତ୍ରୀ ପୁରୁଷମାନେ କାମଧାମରେ ଲାଗି ପଡ଼ିଲେ । ସେମାନେ ବଣକୁ ଯାଇ କାଠ, ପତ୍ର ଫଳ ମୂଳ ଖୋଜି ଆଣିଲେ ।

ସଉରମାନଙ୍କର ପାଟିତୁଣ୍ଡ ଶୁଣି ପଶୁମାନେ ଭୟ-କଲେ । ସେମାନେ ନିଜ ନିଜ ବସାରେ ଲୁଚି ରହିଲେ । ମନକୁ ମନ କହିହେଲେ, କେତେବେଳେ କଣ ଘଟିବ କହି ହେବ ନାହିଁ । ବୁଲାବୁଲା ନକରି ଲୁଚି ରହିଲେ ଭଲ । ବିପଦ କଟିଯିବ ।

ସଉର୍ ବାଳକାମାନେ ବଣରେ ବୁଲିବୁଲି ପତର ତୋଳୁଥାନ୍ତି । ଶିଆଳି ପତର ଦେଖି ସେମାନଙ୍କର ଲୋଭ ହେଲା । ସେମାନେ ଶିଆଳି ଲତା ଭିତରେ ପଶିଗଲେ ।

ଶିଆଳି ଲତା ଉହାଡ଼ରେ ବାର୍‌ହା ବସାଥାଏ ।



ବାର୍‌ହା ଛୁଆମାନେ ଲତାମୂଳେ ଆରାମ କରୁଥିଲେ । ସଉର୍ ଝିଅଙ୍କର ପାଟିଶୁଣି ସେମାନେ ରାଗିଗଲେ ଓ ଖରାପ କଥା କହି ଗାଳିଦେଲେ ।

ସଉର୍ ଝିଅମାନେ ବାର୍‌ହା ଛୁଆମାନଙ୍କର ଗାଳିଶୁଣି ରାଗିଗଲେ । ସେମାନେ ବାର୍‌ହାଛୁଆଙ୍କ ଉପରେ ମାଡ଼ିବସି ସେମାନଙ୍କ ଜିଭ କାଟିଦେଲେ ।

ସେହି ଦିନଠାରୁ ବାର୍‌ହା ମାନେ କଥାକହି ପାରିଲେ ନାହିଁ ।

ଏହାପରେ ବାର୍‌ହାଛୁଆଙ୍କର ମାଆ ଆସି ଶିଆଳି ଲତାମୂଳେ ପହଞ୍ଚିଲା । ସେ ଦେଖିଲା ତା ପିଲାଙ୍କର ଜିଭ କଟା ହୋଇଛି । ପାଟିରୁ ଧାର ଧାର ହୋଇ ରକ୍ତ

ବାହାରୁଛି । ସେମାନେ ଆଉ କଥା କହି ପାରୁନାହାନ୍ତି । ସେ ବୁଝିଗଲା, ଏହା ମଣିଷମାନେ କରିଛନ୍ତି ।

ମା' ମନ ସମ୍ଭାଳେ କେତେବେ ? ସେ ଯାଇ କ୍ରିଟିଂ ଦେବତାଙ୍କ ପାଖରେ ପହଞ୍ଚିଲା । କହିଲା, ମଣିଷମାନେ ଖୁବ୍ ଦୁଷ୍ଟ । ଆମକୁ କଷ୍ଟ ଦେଉଛନ୍ତି । ଆମକୁ ହଇରାଣ କରିବାରୁ ଆମେ ବଣକୁ ଚାଲି ଆସିଲୁ । ଏବେ ବଣକୁ ଆସି ଆମ ପିଲାଙ୍କର ଜିଭ କାଟିଲେ । ଆମେ କଣ କରିବୁ ? ଆମ କଥା ବୁଝନ୍ତୁ ।

ଏତିକିବେଳେ ବଣର ଅନ୍ୟ ପଶୁମାନେ ବି କ୍ରିଟିଂ ଦେବତାଙ୍କ ପାଖରେ ପହଞ୍ଚିଗଲେ । ସମସ୍ତେ ମଣିଷମାନଙ୍କ ବିରୁଦ୍ଧରେ କହିଲେ ।

କ୍ରିଟିଂ ଦେବତା ସବୁ ପଶୁଙ୍କର କଥା ମନଦେଇ ଶୁଣିଲେ । ସବୁକଥା ଶୁଣିସାରି କହିଲେ, ତୁମେ ପଶୁଜାତି । କଥାର ଭଲମନ୍ଦ ବୁଝନାହିଁ । ମଣିଷଙ୍କ ସଙ୍ଗରେ ଏକାଠିଥିଲ । ସେମାନଙ୍କୁ ଅଯଥାରେ ଗାଳିଗୁଲଜ କଲ । ସେମାନେ ସେଥିପାଇଁ ରାଗିଗଲେ । ଆଗର ଭଲଭାବ ରହିଲା ନାହିଁ । ଯାହାହେଲା ସେଥିପାଇଁ ଭାବନାହିଁ । ଏଣିକି ମଣିଷମାନଙ୍କ ସଙ୍ଗରେ କଥାବାର୍ତ୍ତା କରନାହିଁ । ତେଣିକି ମଣିଷମାନେ ତୁମକୁ ଡରିବେ ।

ସେହିଦିନ ଠାରୁ ପଶୁମାନେ କ୍ରିଟିଂ ଦେବତାଙ୍କ ଆଗରେ ପଣ କଲେ, ମଣିଷମାନଙ୍କ ସଙ୍ଗରେ ଆଉ କେବେହେଲେ କଥାବାର୍ତ୍ତା କରିବେ ନାହିଁ । ସେମାନେ ଏବେ ବି ସେମାନଙ୍କ ପଣ ରଖିଛନ୍ତି ।

* * *

# କାଉ ଡିଙ୍ଗା କଳା ହେଲା

ଈଶ୍ୱର ପୃଥିବୀ କଲେ । ମଣିଷ, ପଶୁ, ପକ୍ଷୀ ସମସ୍ତଙ୍କୁ ଏକାଠି ରଖିଲେ । ତା'ପରେ ହାଲିଆ ହୋଇଗଲେ । ମଣିଷକୁ କହିଲେ, ପୃଥିବୀର ଭାର ତୋତେ ଦେଇ ଯାଉଛି । ସମସ୍ତଙ୍କ କଥା ବୁଝିବୁ । ଏହାପରେ ହାଲିଆ ମାରିବାକୁ ସରଗକୁ ଗଲେ ।

ଈଶ୍ୱରଙ୍କ କଥାମାନି ମଣିଷ ସବୁ କଥା ବୁଝିଲା । ସମସ୍ତଙ୍କର ସୁଖଦୁଃଖ କଥା ବୁଝିଲା । ସମସ୍ତେ ମଣିଷକୁ ମାନ୍ୟକଲେ । ତା' କଥା ମାନି ଚଳିଲେ ।

ମଣିଷ ଦିନେ ସମସ୍ତଙ୍କୁ ଡକାଇ ସଭାକଲା । କହିଲା, ଖାଲି ଖାଇପିଇ ମଉଜରେ ଦିନ କଟାଇଲେ ଭଲ ହେବ ନାହିଁ । ପୃଥିବୀର ଭଲ ପାଇଁ ସମସ୍ତେ କିଛି କିଛି କାମ କରିବା । ଆମକୁ ଯିଏ ଜନମ ଦେଲା, ସେହି ଈଶ୍ୱରଙ୍କ କଥା ଭାବିବା । ସକାଳୁ ଉଠିବା ମାତ୍ରେ ତାଙ୍କୁ ମନେ ପକାଇ ଦଣ୍ଡବତ ହେବା । ଏହା କଲେ ଭଲରେ ଦିନ କଟିଯିବ ।

ସମସ୍ତେ ଜଣେ ଜଣେ ହୋଇ ଆସି ମଣିଷ ଆଗରେ ଛିଡ଼ାହେଲେ । କହିଲେ, ତୁମେ ଭଲକଥା କହୁଛ । ତୁମକଥା ମାନି ଚଳିବୁ ।

ସେ ଦିନ ଦେଖାଗଲା, 'କାଉ' ସେ ସଭାକୁ ଆସି ନାହିଁ ।



ସେତେବେଳେ କାଉର ରଙ୍ଗ କଳା ନହୋଇ ଧଳାଥିଲା । ସେ ଖୁବ୍ ସୁନ୍ଦର ଦେଖା ଯାଉଥିଲା । ତାର ରୂପ ପାଇଁ ଗର୍ବ କରୁଥିଲା । ଅନ୍ୟ କାହାକୁ ଖାତିର ନ କରି ନିଜ ମନରେ ଚଳୁଥିଲା ।

ଖାଲି ସେତିକି ନୁହେଁ, କାଉଥିଲା ନିପଟ୍ଟ ଅଳସୁଆ । କାମଧାମ ନ କରି ଶୋଇ ରହୁଥିଲା । ବେଳ ଘଡ଼ିଏ ନ ହେଲେ ଉଠୁ ନଥିଲା । ସେ ମଣିଷକୁ ବି ଖାତିର କରୁ ନ ଥିଲା । ତେଣୁ ସଭାକୁ ଆସିଲା ନାହିଁ ।

ପରଦିନ ମଣିଷର କଥାମାନି ସକାଳୁ ସମସ୍ତେ ଏକାଠି ହେଲେ । ଈଶ୍ୱରଙ୍କୁ ଧ୍ୟାନ କଲେ । ଭଲକାମ

କରିବାକୁ କହିଲେ । କିନ୍ତୁ ଏ ସଭାରେ କାଉ ହାଜର ହେଲା ନାହିଁ । ତେଣୁ ଓ ବଗ ପାରା ଦୁହେଁ ମିଶି କାଉକୁ ଖୋଜିବାକୁ ଗଲେ ।

ବଗ ଓ ପାରାକୁ ଦେଖି କାଉ ବିରକ୍ତ ହେଲା । ତଥାପି ବାଧ୍ୟ ହୋଇ ସଭାକୁ ଆସିଲା । ସଭାର ଗୋଟିଏ କଡ଼ରେ ବସି ଖାଲି ଢୁଲାଇଲା ।

କାଉ ଢୁଲାଉଥିବା ଦେଖି ଅନ୍ୟମାନେ ହସିଲେ । ସେମାନଙ୍କ ହସ ଶୁଣି ରାଗିଯାଇ କାଉ ପଳାଇ ଗଲା ।

ତହିଁ ଆରଦିନ କାଉ ପୁଣି ସେହି ଭୁଲ କଲା । ସେ ସକାଳ ସଭାକୁ ନ ଆସି ବରଗଛ କୋରଡରେ ଲୁଚି ରହିଲା । ମଣିଷର ଆଦେଶରେ ଛୁଆଣ ତାକୁ ଖୋଜିବାକୁ ଗଲା । ବରଗଛ କୋରଡ଼ରେ କାଉକୁ ଦେଖି ଡାକିଲା । କାଉ କିନ୍ତୁ ମାନିଲା ନାହିଁ । ସେ ଆସି ମଣିଷକୁ ଏ କଥା ଜଣାଇ ଦେଲା ।

ମଣିଷ କାଉର ଗର୍ବ ଦେଖି ରାଗିଗଲେ । ସେ ଅନ୍ୟ ପ୍ରାଣୀମାନଙ୍କୁ କହିଲା, ବରଗଛ ଚାରିପଟେ କୁଟା କାଠି ଜମା କରି ନିଆଁ ଲଗାଇଦିଅ । ଦେଖିବା, ସେ କଣ କରିବ ।

ମଣିଷର କଥାମାନି ସମସ୍ତେ ବରଗଛ ପାଖକୁ ଗଲେ । କୁଟା କାଠି ଜମାଇ ନିଆଁ ଲଗାଇ ଦେଲେ ।

ଏଥର କାଉ ଯାଏ କୁଆଡ଼େ ? ଧୂଆଁରେ ସେ କଲବଲ ହେଲା । ବରଗଛର କୋରଡ଼ ଛାଡ଼ି ଜୀବନ



ବିକଳରେ ଉଡ଼ିବାକୁ ଲାଗିଲା । କାଉ ବଂଚିଗଲା ସତ, କିନ୍ତୁ ନିଆଁ ଧାସରେ ତାର ଗୋରା ଦେହ ପୋଡ଼ା କାଠ ପରି କଳା ପଡ଼ିଗଲା, ଖାଲି ସେତିକି ନୁହେ, ସମସ୍ତଙ୍କୁ ମୁଣ୍ଡିଆ ମାରି କ୍ଷମା ମାଗିଲା ।

ସମସ୍ତେ ତା କଥା ବିଚାର କଲେ । କହିଲେ କାଉରେ, ତୁ ଆଉ ଅଧିକ ବେଳ ଶୋଇବୁ ନାହିଁ । ସମସ୍ତେ ଉଠିବା ଆଗରୁ ଉଠି, ସମସ୍ତଙ୍କୁ ଯାଇ ଉଠାଇବୁ । ତୋତେ ଏଇ ଦଣ୍ଡ ଦିଆଗଲା ।

କାଉ ଆଉ ଅମାବନଆଁ ହୋଇ ପାରିଲା ନାହିଁ । ପାହାନ୍ତା ପହରୁ ଉଠିପଡ଼ି ଘର ଘର ବୁଲିଲା । 'କାଆ କାଆ' ରାବ ସମସ୍ତଙ୍କୁ ଉଠାଇଲା । ଏତେ ଦିନକେ ଗରବ ଭାଙ୍ଗିଲା ।

ସେହି ଦିନଠୁ ତା' ଦେହ କଳା ହୋଇ ରହିଲା । ଯେତେ ଯାହା କଲେ ବି ଆଉ ଆଗର ପରି ଧଳା ଦେଖା ଗଲା ନାହିଁ ।



# ମାରୁ ଇନ୍ଦ୍ରଧନୁ ହେଲା

ଅନେକ ଦିନ ହୋଇ ଗଲାଣି ।

ସଉରା ଦେବତା କିଟିଂ ତାଙ୍କ ପୁଅ, ଝିଅ, ପରିବାର ନେଇ ଘର କରି ରହୁଥିଲେ । ତାଙ୍କୁ ସମସ୍ତେ ମାନୁଥିଲେ ।

କିଟିଂ ଦେବତାଙ୍କର ପୁଅଟିଏ ଥିଲା । ତା ନାଁ 'ମାରୁ' । ପୁଅ ମାରୁକୁ କିଟିଂ ଖୁବ୍ ଭଲ ପାଉଥିଲେ ।

ମାରୁ ଭଲ ପିଲାଟିଏ ଥିଲା । ତା ରୂପ ଯେମିତି ଗୁଣ ସେମିତି । ସେ ଧନୁଶର ଚଳାଇବା ଶିଖିଲା । ବଡ଼ ହୋଇ ଧନୁଶର ଚଳାଇବାରେ ସମସ୍ତଙ୍କୁ ବଳି ପଡ଼ିଲା । ଚାରିଆଡ଼େ ତାର ନାଁ ହେଲା ।

ମାରୁକୁ ଜୁଆଇଁ କରିବାକୁ ସମସ୍ତେ ମନ କଲେ । ବଡ଼ ବଡ଼ ଘରୁ ବିବାହ କରିବା ପାଇଁ ଖବର ଆସିଲା । ଶେଷରେ 'ରୁଆଗାଁ'ର ମୁଖିଆ ତା ବଡ଼ ଝିଅ ପାଇଁ ଖବର ପଠାଇଲା । କିଟିଂ ଏଥିରେ ରାଜି ହେଲେ । ରୁଆଗାଁର ମୁଖିଆ ରାମ ସଉରାର ନାଁ ଥିଲା । ତା' ବଡ଼ ଝିଅ ବି ରୂପରେ ଗୁଣରେ ଥିଲା ।

କିଟିଂ ଖୁବ୍ ଭଲ ଭାବରେ ପୁଅ ମାରୁର ବାହାଘର କଲେ । ଗାଁ ସାରା ଭୋଜି ଖାଇଲେ । ମାରୁ ଓ ତାର ସ୍ତ୍ରୀ ସୁଖରେ ଘର କଲେ । ଚାହୁଁ ଚାହୁଁ ଦଶ ବର୍ଷ କଟିଗଲା ।

ରୁଆଗାଁର ମୁଖିଆ ରାମ ସଉରାର ଆଉ ଗୋଟିଏ ଝିଅ ଥିଲା । ରାମ ସଉରା ତା' ପାଇଁ ବି ବର ଠିକ୍ କଲା । ବାହାଘର ଆଗରୁ ବଡ଼ ଝିଅ ବଡ଼ ଜୁଆଇଁକୁ ଡାକରା

ଆସିଲା । ଦୁହେଁ ସଜବାଜ ହୋଇ ରାମ ସଉରା ଘରକୁ ଗଲେ ।

ବାହାଘର ଦିନ ରାମ ସଉରା ଘରେ ଭୋଜି ହେଲା । ବରଯାତ୍ରୀ ଦଳ ବାଜା ବଜାଇ ଆସିଲେ । କିନ୍ତୁ କ'ଣ ହେଲା କେଜାଣି, ମାରୁ ଓ ତା' ଶଶୁର ରାମ ସଉରା ଭିତରେ ଝଗଡ଼ା ହେଲା । ରାମ ସଉରା ରାଗିଯାଇ ଜୁଆଁଇକୁ ଏମିତି ମାଡ଼ ମାରିଲା ଯେ ମାରୁ ସେଇଠି ମରିଗଲା ।

ମାରୁର ସ୍ତ୍ରୀ ଏହା ଦେଖି ମାରୁର ମଲା ଦେହକୁ ଧରି ଭୋ ଭୋ ହୋଇ କାନ୍ଦିଲା ।

କଟିଂ ପାଖକୁ ଖବର ଗଲା । ସେ ପୁଅର ମଲା ଖବର ପାଇ ସଙ୍ଗେ ସଙ୍ଗେ ରାମ ସଉରା ଘରେ ହାଜର ହେଲେ । ପୁଅର ଶବ ଓ ବହୂର କାନ୍ଦ ଦେଖି ଦୁଃଖ କଲେ । ଆଖିରୁ ତାଙ୍କର ଲୁହ ବୋହିଲା । ରାମ ସଉରାକୁ କହିଲେ, ଏତେ ଖୁସିରେ ପୁଅ ବହୂଙ୍କୁ ପଠାଇଲି । ପୁଅକୁ ମୋର ମାରିଦେଲ ?

ମୁଖିଆ ରାମ ସଉରା ନିଜ ଭୁଲ୍ ବୁଝି ପାରିଥିଲା, ସେ ସମୁଧି କଟିଂ ଦେବତାଙ୍କର ହାତ ଧରି କ୍ଷମା ମାଗିଲା । ତାଙ୍କର ପାଦ ତଳେ ପଡ଼ି ବିନତି କଲା ।

କଟିଂ ଦେଖିଲେ, ସମୁଧି ଦୋଷ ପାଇଁ ଅନୁତାପ କରୁଛି । ତାକୁ ଦଣ୍ଡ ଦେଇ ଲାଭ କଣ ? ଅନୁତାପଟା ବଡ଼ ଦଣ୍ଡ । ସେ ସମୁଧି ରାମକୁ ବୁଝାଇ କହିଲେ, ତୁମେ ସମୁଧି ଭଲ କଥା କଲ ନାହିଁ । ଟିକିଏ ଟିକିଏ ରାଗି ଯାଇ ମୋ ପୁଅକୁ ମାରିଦେଲ । ରାଗ ମଣିଷର ବଡ଼ ଶତ୍ରୁ । ସବୁ କଥା ବୁଝି ବିଚାରି କରିବ । ଯାହା ହେବାର ହେଲା । ଏଣିକି ଶାନ୍ତ ହୁଅ ।

ଏହାପରେ କୁଟିଂ ପୁଅର ମଲା ଦେହ ପାଖରେ ବସିଲେ । କହିଲେ, ତୋ ହାତରେ ଧନୁଶର ଥିଲେ କେହି ତୋତେ ପାରନ୍ତ ନାହିଁ । ଶଶୁର ଗୁରୁଜନ ବୋଲି ଭାବି ଧନୁଶର ଧରିଲୁ ନାହିଁ । ମାଡ଼ଖାଇ ମରିଗଲୁ ପଛେ, ଗୁରୁଜନଙ୍କୁ ସମ୍ମାନ ଦେଲୁ । ଧନୁ ତୋର ପ୍ରିୟ ଥିଲା । ଗୁରୁଜନର ସମ୍ମାନ ପାଇଁ ତାକୁ ବି ଛାଡ଼ିଦେଲୁ । ତୁ ମୋର ଭଲ ପୁଅ । ନାଁ ରଖି ମରିଗଲୁ । ମୁଁ ଆଶୀର୍ବାଦ କରୁଛି; ତୁ



ଏଥର ଆକାଶରେ ଧନୁ ହୋଇ ଦେଖା ଦେଉଥିବୁ । ତୋ ଦେହରୁ ସାତ ରଙ୍ଗ ବାହାରିବ । ତୋର ରୂପ ଦେଖି ତୋତେ ଲୋକେ ପ୍ରଶଂସା କରିବେ । ତୋର ଗୁଣକୁ ଝୁରି ହେବେ । ତୁ ଅମର ହୋଇ ରହିବୁ ।

ସେନ୍ଦ୍ରୁନଠାରୁ କିଛିଂ ଦେବତାଙ୍କର ପୁଅ 'ମାରୁ' ଆକାଶରେ ଇନ୍ଦ୍ରଧନୁ ହୋଇ ରହିଲା ।

ଆକାଶରେ ଗୋଟିଏ ପାଖରେ ଖରା ଓ ଅନ୍ୟ ପାଖରେ ବର୍ଷା ହେଲେ ଇନ୍ଦ୍ରଧନୁ ବାହାରେ ।

ମାରୁର ସ୍ତ୍ରୀର ଆଖିର ଲୁହ ବର୍ଷା ହୋଇ ଝରିଲା ବେଳେ, ମାରୁ ଇନ୍ଦ୍ରଧନୁ ହୋଇ ଦେଖାଦିଏ । ସେ ତା' ସ୍ତ୍ରୀକୁ ବୁଝାଇ କହେ ମୁଁ ଆସିଗଲି । ଆଉ କାନ୍ଦ ନାହିଁ ।



# ମାଙ୍କଡ଼ ପେଟ୍ଟି ଲାଲ ହେଲା

ବହୁତ ବର୍ଷ ତଳର କଥା—

ଥରେ ଗୋଟିଏ ବଣରେ ବାଘ ଓ ମାଙ୍କଡ଼ ସଙ୍ଗାତ ବସିଲେ । ସେମାନେ ଏକାଠି ରହିଲେ ଓ ସାଙ୍ଗ ହୋଇ ବୁଲିବୁଲି କଲେ । ବାଘ ପଶୁ ମାରି ଖାଉଥିଲା ଓ ମାଙ୍କଡ଼ ଫଳମୂଳ ଖାଇ ବଞ୍ଚୁଥିଲା ।

କିଛି ଦିନ ପରେ ବାଘର ବାହାଘର ହେଲା । ସେ ବାଘୁଣୀ ସଙ୍ଗରେ ରହିଲା । ମାଙ୍କଡ଼ ଏକୁଟିଆ ରହିଲା । ତଥାପି ସେ ଦୁହେଁ ବଣରେ ସାଙ୍ଗ ହୋଇ ବୁଲିଲେ ।

ଦିନେ ଗଛ ଡାଳରେ ମହୁ ଫେଣା ଦେଖି ବାଘ ଜିଭରୁ ଲାଳ ଗଡ଼ିଲା । ମାଙ୍କଡ଼କୁ କହିଲା, ସଙ୍ଗାତ ମହୁ ଖାଇବାକୁ ମନ ହେଉଛି । ଗଛ ଡାଳକୁ ଦେଖ । ଗଛ ଡାଳରେ ମହୁ ଫେଣା । ତୁମେ ଚେଷ୍ଟା କଲେ ମହୁ ମିଳିଯିବ ।

ସଙ୍ଗାତ କଥାରେ ମାଙ୍କଡ଼ ଗଛ ଚଢ଼ିଲା । ସେ ଗଛ ଡାଳରୁ ମହୁ ଫେଣା ଛିଣ୍ଡାଇ ଆଣିଲା । ତାହା ଦେଖି ବାଘ ଖୁସି ହେଲା । ତାକୁ ସେ ଦୁହେଁ ବାଘ ଘରକୁ ନେଲେ । ବାଘ ବାଘୁଣୀ ମହୁ ଫେଣାରୁ ମହୁ ବାହାର କରି ବସିଲେ । ମାଙ୍କଡ଼ ଭାବିଲା, ସଫା ସୁତୁରା ହୋଇ ମହୁ ଖାଇବ । ସେ ପାଖ ଝରଣାକୁ ଗାଧୋଇବାକୁ ଗଲା ।

ଏଣେ ବାଘ ବାଘୁଣୀ ଚାଖି ଚାଖି ସବୁ ମହୁ ଖାଇ-ଦେଲେ ।

ମାଙ୍କଡ଼ ଆସି ମହୁ ମାଗିଲା ।

ବାଘ କହିଲା, ସଙ୍ଗାତ ! କିଛି ଭାବ ନାହିଁ । ତୁମ ସଙ୍ଗାତୁଣୀର ମହୁରେ ଭାରି ଶରଧା । ଚାଖୁ ଚାଖୁ ସବୁ ମହୁ ଖାଇ ଦେଲି । କଣ କରିବା ?

ବାଘର କଥା ଶୁଣି ମାଙ୍କଡ଼ ରାଗିଗଲା । କିନ୍ତୁ ମନର ରାଗକୁ ଜଣାଇଲା ନାହିଁ । ଏଣେ ପେଟକରେ ପେଟ କଲୁ-ଥିଲା । ଭାବିଲା, ସୁବିଧା ଦେଖି ପାନେ ଦେବ । ତେବେ ଯାଇ ସେମାନଙ୍କ ମନେ ପଡ଼ିବ ।

କିଛି ଦିନ ପରେ ବାଘ ଏକ ସମ୍ବର ଶିକାର କଲା । ଖୁବ୍ ଶରଧାରେ ତାର କଲିଜାକୁ ଘରକୁ ନେଲା । ବାଘୁଣୀ ଏହା ଦେଖି ଖୁସି ହେଲା । ବାଘ ବାଘୁଣୀ ଠିକ୍ କଲେ, କଲିଜାକୁ ଉପରଓଳି ଖାଇବେ । ତେଣୁ ତାକୁ ସାଇତି ରଖିଲେ । ତା ପରେ ଗାଧୋଇବାକୁ ଝରଣାକୁ ଗଲେ ।

ବାଘ ବାଘୁଣୀ ଗାଧୋଇ ଯାଇଥିଲା ବେଳେ ମାଙ୍କଡ଼ ଆସି ସେମାନଙ୍କ ଘରେ ପହଞ୍ଚିଲା । ଘର ଭିତରେ କଲିଜା ଥିବା ଦେଖି ତାର ମହୁଫେଣା କଥା ମନେ ପଡ଼ିଲା । ଏବେ ସୁଯୋଗ ଆସିଛି । ସେମାନଙ୍କୁ ପାନେ ଦେବ । ଏହା ଭାବି ମାଙ୍କଡ଼ ସମ୍ବର କଲିଜାକୁ ଲୁଚାଇବାକୁ ବସିଲା ।

ଠିକ୍ ଏତିକିବେଳେ ବାଘ ବାଘୁଣୀ ଗାଧୋଇ ସାରି ଘରକୁ ଫେରିଲେ ।

ବାଘ ଘର ମୁହଁରେ କାଶି ଦେଲା ।

ବାଘର କାଶ ଶୁଣି, ମାଙ୍କଡ଼ ସେମାନଙ୍କ ଘର ଛାଡ଼ି ଚାଲିଯିବାକୁ ତରତର ହେଲା । କିନ୍ତୁ ଯାଇ ପାରିଲାନି । ସେ କଲିଜା ଉପରେ ବସିପଡ଼ିଲା । କଲିଜା ଦେହର ରକ୍ତ ମାଙ୍କଡ଼ ପଛରେ ଲାଗିଗଲା ।

ବାଘ ବାଘୁଣୀ ଘର ଭିତରକୁ ପଶିଲେ । ସେମାନେ ଦେଖିଲେ, ମାଂକଡ଼ ସମ୍ବର କଲଜା ଉପରେ ପଡ଼ିଛି । ମାଙ୍କଡ଼ର ମନ କଥାଟା ସେମାନେ ଜାଣି ପାରିଲେ ।

କଲଜାଟା ପୂରାପୂରି ଖରାପ ହୋଇ ଯାଇଛି । ଆଉ ଖାଇ ହେବ ନାହିଁ । ସେମାନେ ଖୁବ୍ ରାଗିଗଲେ ଓ ମାଙ୍କଡ଼କୁ ବାଡେ଼ଇବାକୁ ବାହାରିଲେ ।

ମାଙ୍କଡ଼ ପ୍ରାଣ ବିକଳରେ ଧାଇଁବାକୁ ଲାଗିଲା । କାଳେ ଧରା ପଡ଼ିଯିବ ବୋଲି ପିଠିର ରକ୍ତ ଦାଗ ପୋଛି ପକାଇବ ବୋଲି ବାହାରିଲା । ବଣର ଗଛ ପତ୍ରରେ ନିଜ ପିଠିକୁ ଘଷିଲା । କିନ୍ତୁ ତାର ଭାଗ୍ୟ ଖରାପ, ପିଠିକୁ ଘଷୁ ଘଷୁ ଉପର ଚମ ଉତୁରି ଗଲା ।

ସେହି ଦିନଠାରୁ ମାଙ୍କଡ଼ର ପିଠି ଲାଲ ହୋଇ ରହିଲା ।

ଖରାପ କାମ କରିଥିବାରୁ ଦଶା ଭୋଗିଲା । ●



# ନିଆଁ କେମିତି ବାହାରିଲା

ବଡ଼ ଦେବତା ମହାପ୍ରଭୁ ପୃଥିବୀ ତିଆରି କଲେ । ମଣିଷ, ପଶୁ ପକ୍ଷୀ, ଗଛଲତା ସବୁ ତିଆରି କଲେ ।

ସେତେବେଳେ ନିଆଁ ନ ଥିଲା । ମଣିଷମାନେ ସବୁ ଜିନିଷ କଞ୍ଚା ଖାଉଥିଲେ ।

ଦିନେ ମହାପ୍ରଭୁ ଜଙ୍ଗଲରେ ବୁଲୁଥିଲେ । ତାଙ୍କୁ ଭୋକ ଲାଗିଲା । ସେ ହାଲିଆରେ ବାଉଁଶ ବୁଦା ଛାଇରେ ବସିପଡ଼ିଲେ । ଭାବିଲେ କିଛି ଖାଇବେ । ଖାଇଲେ ଭୋକ ମରିବ । ବଳ ଆସିବ ।

ମହାପ୍ରଭୁ ଦୁଇଟି ବାଉଁଶ ଘଷି ନିଆଁ ବାହାର କଲେ । ସେହି ନିଆଁରେ ଖାଇବା ଜିନିଷ ରାନ୍ଧି ଖାଇଲେ । ତା'ପରେ ସେଇଠୁ ଉଠି ଚାଲିଗଲେ ।

ମହାପ୍ରଭୁ ନିଆଁ ଲିଭାଇବାକୁ ଭୁଲି ଯାଇଥିଲେ । ସେହି ନିଆଁ ଲାଗି ଜଙ୍ଗଲ ପୋଡ଼ିଗଲା । ପଶୁପକ୍ଷୀ ଜଙ୍ଗଲ ଛାଡ଼ି ଧାଇଁବାକୁ ଲାଗିଲେ । କେତେ ପଶୁ ନିଆଁରେ ପୋଡ଼ିଗଲେ ।

ନିଆଁ ଆପେ ଆପେ ଲିଭିଗଲା । ନିଆଁ ଲିଭିଲା ପରେ ବଣ୍ଡାମାନେ ଜଙ୍ଗଲକୁ ଗଲେ । ଦେଖିଲେ ଗଛଲତା ସବୁ ପୋଡ଼ି ଯାଇଛି । କେତେ-ପଶୁ ପୋଡ଼ି ହୋଇ ପଡ଼ିଛନ୍ତି ।



ବଣ୍ଡାମାନେ ପୋଡ଼ା ପଶୁମାନଙ୍କୁ ଖାରଗଦା ଭିତରୁ କାଢ଼ି ଆଣିଲେ । ସେମାନଙ୍କ ଦେହରୁ ଖାର କାଢ଼ି ସଫା କଲେ । ତା ପରେ ତାକୁ କାଟି ଖାଇବାକୁ ଲାଗିଲେ ।

ପୋଡ଼ା ପଶୁମାଂସ ଖାଇବାକୁ ଖୁବ୍ ଭଲ ଲାଗିଲା । ବଣ୍ଡାମାନେ ଠିକ୍ କଲେ, ଏଥର ପୋଡ଼ା ମାଂସ ଖାଇବେ ।

କିନ୍ତୁ ନିଆଁ ସେତେବେଳେ ଲିଭି ଯାଇଥିଲା । ଭାବିଲେ, ନିଆଁ ପାଇବେ କେଉଁଠୁ ।

ତା ପରେ ସେମାନେ ନିଆଁ ଖୋଜି ବାହାରିଲେ । ବଡ଼ ପାଟିରେ କହିଲେ, ମାଉଁସକୁ ସୁଆଦିଆ କରିଥିବା ଜିନିଷ କେଉଁଠି ଅଛି ? ଆମକୁ ଦେଖା ଦିଅ ।

ନିଆଁ ଆଉ ଏକ ବାଉଁଶ ବୁଦାରେ ଥିଲା । ସେ ବଣ୍ଡାମାନଙ୍କୁ ଦେଖାଦେଲା ।

ବଣ୍ଡାମାନେ ବାଉଁଶ ଘସି ନିଆଁ ବାହାର କଲେ ।

ସେହି ଦିନଠୁ ନିଆଁ ବାହାରିଲେ । ତେଣିକି ଅନ୍ୟ-ମାନେ ନିଆଁ ପାଇଲେ । ଖାଇବା ଜିନିଷ କଞ୍ଚା ନ ଖାଇ ପୋଡ଼ି, ରାନ୍ଧି ଖାଇଲେ ।



# ବାଘ ମଣିଷର ବଇରୀ ହେଲା

ବହୁଦିନ ତଳର କଥା—

ବଣ ଭିତରେ କୁଡ଼ିଆ ଘର କରି କନ୍ଧ କନ୍ଧୁଣୀ ରହୁଥିଲେ । ବଣର ଫଳମୂଳ ଆଣି ଖାଉଥିଲେ ।

ଥରେ କନ୍ଧୁଣୀର 'କଲରା' ଖାଇବାକୁ ମନ ହେଲା । ସେ ବଣଯାକ ବୁଲିଲା । କଲରା ଗଛ ପାଇଲା ନାହିଁ । ଶେଷରେ କୁଡ଼ିଆକୁ ଫେରିବାକୁ ଲାଗିଲା । ଫେରୁ ଫେରୁ ଦେଖିଲା, ବୁଦା ଭିତରେ କଲରା ଗଛଟିଏ ଅଛି । ବୁଢ଼ୀ ଯାଇ କଲରା ତୋଳିଲା ।

ବୁଢ଼ୀ କଲରା ତୋଳୁଛି, ବାଘ ତାକୁ ଦେଖିଲା । ବାଘ ପଚାରିଲା, ମୋ ବଣରେ କିଏରେ ? ମୁଁ ତୋତେ ମାରି ଖାଇବି ।

କନ୍ଧୁଣୀ ଏହା ଶୁଣି କାନ୍ଦି ପକାଇଲା । କହିଲା, ମୋ ପେଟରେ ଛୁଆ । ମୋତେ ମାରିଲେ ପାପ ହେବ ।

ବାଘ ଏହା ଶୁଣି କନ୍ଧୁଣୀକୁ ମାରିଲା ନାହିଁ । କହିଲା ତୋତେ ମାରିବି ନାହିଁ । କଲରା ନେଇ ଘରକୁ ଯାଅ । ପୁଅ ହେଲେ ପାଖରେ ରଖିବୁ । ଝିଅ ହେଲେ ମୋତେ ଦେବୁ । ମୁଁ ଝିଅକୁ ପାଳିବି ।

କନ୍ଧୁଣୀ ବାଘ କଥାରେ ରାଜି ହୋଇ ଫେରିଲା ।

କିଛିଦିନ ପରେ କନ୍ଧୁଣୀର ଝିଅ ହେଲା । କିନ୍ତୁ ତାକୁ ବାଘକୁ ଦେବାକୁ ଡରିଲା । ଝିଅକୁ ନିଜ ଘରେ ଲୁଚାଇ ରଖିଲା ।

ଦୁଇ ବର୍ଷ ପରେ କନ୍ଧୁଣୀର ପୁଅଟିଏ ହେଲା ।

ଝିଅର ନାଁ 'ସୁଲେଇ' । ପୁଅର ନାଁ 'ବୁଧିଆ' ।

ପୁଅ ଝିଅ ବଢ଼ି ବଡ଼ ହେଲେ । ସାଙ୍ଗ ହୋଇ ଖେଳାବୁଲା କଲେ । ସୁଲେଇକୁ ବାର ବର୍ଷ ହେଲା । ବୁଧେଇକୁ ଦଶ ବର୍ଷ ହେଲା ।

ବାଘ ଜାଣିଲା, କନ୍ଧୁଣୀର ଝିଅ ହୋଇଛି । ସେ ଯାଇ କନ୍ଧୁଣୀକୁ ଦେଖାକଲା । କହିଲା, ଝିଅକୁ ଛାଡ଼ । ନ ହେଲେ ସମସ୍ତଙ୍କୁ ଖାଇବ ।

କନ୍ଧୁଣୀ ଡରମରି ଝିଅକୁ ଛାଡ଼ିଲା । ତା' ସଙ୍ଗରେ ବୁଧିଆ ବି ଗଲା । ବୁଧିଆ ହାତରେ ଧନୁଶର ନେଇ ଗଲା ।

ବାଘ ତେଣେ ସୁଲେଇର ବାଟ ଚାହିଁ ବସିଥାଏ । ସେ ସୁଲେଇ ଓ ବୁଧିଆକୁ ଦେଖି ଭାରି ଖୁସି ହେଲା । ଦୁଇ ଜଣଙ୍କ ପାଖକୁ ଆସିବ ବୋଲି ଧାଇଁଲା ବେଳେ, ବୁଧିଆ ଧନୁଶର ମାରିଲା । ତହିଁରେ ବାଘର ପେଟ ଚିରି ହୋଇଗଲା । ବାଘ ତଳେ ପଡ଼ି ଛଟପଟ ହେଲା । କହିଲା, ମୋତେ ଭୁଲ ବୁଝି ମାରିଲ । ମୋର ଦୁଇଟି ପିଲା ଅଛନ୍ତି । ସେମାନଙ୍କ ସଙ୍ଗରେ ଖେଳିବ ବୋଲି ଡାକିଥିଲି । ତୁମେ ସେ କଥା ବୁଝିଲ ନାହିଁ । ମୋତେ ମାରିଦେଲ । ମୁଁ ମଲା ପରେ ମୋ ପିଲାଙ୍କ କଥା ବୁଝିବ । ଏହା କହି ସାରି ବାଘ ମରିଗଲା ।

ବାଘର କଥା ଶୁଣି ସୁଲେଇ ଓ ବୁଧିଆ ମନ ଦୁଃଖ କଲେ । ସେମାନେ ଘରକୁ ଫେରିଲା ବେଳେ, ବାଘ ଛୁଆ ଦୁଇଟିକୁ ସଙ୍ଗରେ ଆଣିଲେ । ଗୋଟିକର ନାଁ ଦେଲେ

'ସୋନ', ଆରଟିର ନାଁ ଦେଲେ 'ବାନ' । ଫେରିଲା ବେଳେ ବାଟରେ ମୂଷାଟିଏ ଦେଖିଲେ । ତାକୁ ବି ସଙ୍ଗରେ ଆଣିଲେ ।

ବାଟରେ ମୂଷା ସୁଲେଇ ଓ ବୁଧିଆକୁ କହିଲା ମୋତେ ମାରିବ ନାହିଁ । ପାଖରେ ରଖିବ । ବିପଦ ବେଳେ ସାହାଯ୍ୟ କରିବି ।

ସୁଲେଇ ଓ ବୁଧିଆ ମୂଷା କଥାରେ ରାଜି ହେଲେ ।

× × ×

ସୁଲେଇ ଓ ବୁଧିଆ ମୂଷା ଓ ବାଘ ଛୁଆ ଦୁଇଟିକୁ ସଙ୍ଗରେ ନେଇ ଘରକୁ ଫେରୁ ଫେରୁ ସଞ୍ଜ ହେଲା । ବାଟରେ ସେମାନେ ସମସ୍ତେ ଘରଟିଏ ଦେଖି ଶୋଇଲେ ।

ସେହି ଘରଟି ଗୋଟିଏ ଅସୁରର ଘର ଥିଲା ।

ଅସୁର ରାତିରେ ମଶା ରୂପ ଧରି ସୁଲେଇ ମୁହଁରେ ବସିଲା । ସେ ସୁଲେଇ ମୁହଁରୁ ରକ୍ତ ପିଇଲା ।

ସାନ ବାଘ ଛୁଆ ଶୋଇ ନ ଥିଲା । ସେ ମଶାକୁ ପଚାରିଲା, ସୁଲେଇ ମୁହଁରେ ବସି କଣ କରୁଛୁ ?

ମଶା କହିଲା, ପାଟି କରନାଁ । ଚାଖିବୁ ଯଦି ସୁଲେଇର ରକ୍ତ ଚଖାଇବି । ଖୁବ୍ ମିଠା । ଏହା କହି ସେ ବାଘ ଛୁଆ ମୁହଁରେ ଟୋପାଏ ରକ୍ତ ଦେଲା ।

ସାନ ବାଘ ଛୁଆ ସୁଲେଇର ରକ୍ତ ଚାଖି ଖୁସି ହେଲା । ସେ ମଣିଷ ରକ୍ତ ଚାଖି ନ ଥିଲା । ଏବେ ବୁଝିଲା, ମଣିଷ ରକ୍ତ କେଡ଼େ ମିଠା ।

ମଶା ଏଥର ଅସୁର ରୂପ ଧରିଲା । ସେ ସାନ ବାଘ ଛୁଆକୁ କହିଲା, ସୁଲେଇ ଓ ବୁଧିଆ ଦୁଷ୍ଟ ଲୋକ । ଏମାନେ ତୋ ମାଆକୁ ମାରିଛନ୍ତି । ଚାଲ, ଏମାନଙ୍କୁ ମାରି ଖାଇବା ।

ଅସୁର କଥା ଶୁଣି ସାନ ବାଘ ଛୁଆ ସୁଲେଇକୁ ମାରି ପକାଇଲା । ଅସୁର ଓ ବାଘ ଛୁଆ ତା' ଦେହର ରକ୍ତ ପିଇଲେ । ତା ପରେ ସାଙ୍ଗ ହୋଇ ବଣକୁ ଚାଲିଗଲେ ।

ବୁଧିଆ ନିଦରୁ ଉଠିଲା । ଦେଖିଲା ଭଉଣୀ ସୁଲେଇ ନାହିଁ । ସାନ ବାଘ ଛୁଆ ବି ନାହିଁ । ପାଖରେ କେତେ ଖଣ୍ଡ ହାଡ଼ ପଡ଼ିଛି ।

ମୂଷା କହିଲା, ସାନ ବାଘଛୁଆ ସୁଲେଇକୁ ମାରି ଦେଇ ବଣକୁ ପଳାଇଛି । ବାଘକୁ ବିଶ୍ୱାସ ନାହିଁ । ଆଉଟାକୁ ମାରି ଦିଅ । ନ ହେଲେ ସେ ଆମକୁ ମାରିଦେବ । ବୁଧିଆ ଧନୁଶର ଧରି ଅନ୍ୟ ବାଘ ଛୁଆକୁ ମାରିବାକୁ ବସିଲା । କିନ୍ତୁ ବାଘ ଛୁଆ ବଣକୁ ପଳାଇଗଲା ।



ସେହି ଦିନଠାରୁ ବାଘ ମଣିଷଙ୍କ ପାଖରେ ରହିଲା ନାହିଁ । ସେ ବଣରେ ରହିଲା । ସୁବିଧା ଦେଖି ମଣିଷଙ୍କୁ ମାରି ଖାଇଲା ।

ସେହି ଦିନଠାରୁ ବାଘ ମଣିଷର ବଇରୀ ହେଲା । ସୁଯୋଗ ପାଇଲେ ତାକୁ ଶିକାର କଲା । ଜୀଅନ୍ତା ପାଇଲେ ପିଞ୍ଜରାରେ ରଖିଲା ।



# ଦୁଇ ଭଉଣୀ କଥା

ଅନେକ ଦିନ ହୋଇଗଲାଣି –

ମୟୂରଭଞ୍ଜ ଅଞ୍ଚଳର 'ଚଣ୍ଡିଦା' ଗାଁରେ ସାନ୍ତାଳ ବୁଢ଼ାଟିଏ ରହୁଥିଲା ।

ଦୁଇ ଝିଅ ନିତିଦିନ ବଣକୁ ଯାଆନ୍ତି । ଫଳମୂଳ ଆଣି ଘରକୁ ଫେରନ୍ତି । ଘରକୁ ଆସି ସବୁ କାମ କରନ୍ତି ।

ଦିନେ ସେମାନେ ପଥର ଚଟାଣରେ ଧାନ ଶୁଖାଇଲେ । ପାଖରେ ଥିବା ଗଛ ଛାଇରେ ବସି ରହିଲେ । ଏତିକିବେଳେ କୁଆଟିଏ ଉଡ଼ି ଆସି ଗଛ ଡାଳରେ ବସିଲା । ତା ଥଣ୍ଟରେ ପାଚିଲା କେନ୍ଦୁ ଥାଏ । ତାର ବାସନା ସବୁଆଡ଼େ ମହକି ଉଠୁଥାଏ ।

ଦୁଇ ଝିଅ ପାଚିଲା କେନ୍ଦୁ ଖାଇବାକୁ ମନ କଲେ ।

ଠିକ୍ ସେତିକିବେଳେ କାଉ ଥଣ୍ଟରୁ ପାଚିଲା କେନ୍ଦୁଟି ଖସି ପଡ଼ିଲା । ଦୁଇ ଭଉଣୀ ତାକୁ ଗୋଟାଇ ଆଣି ଖାଇଲେ । ଖୁବ୍ ମିଠା ଲାଗିଲା । କାଉକୁ ପଚାରିଲେ, କେନ୍ଦୁ କେଉଁ ଗଛରୁ ଆଣିଲୁ ? ଆମକୁ ସେ ଗଛ ଦେଖାଇଦେ ।

କାଉ ରାଜି ହେଲା । ସେ ଆଗେ ଆଗେ ଉଡ଼ିଲା । ଦୁଇ ଭଉଣୀ ତା ପଛେ ପଛେ ଚାଲିଲେ । ସେମାନେ ଅନେକ ବାଟ ଗଲେ । କେତେ ବଣ, ପାହାଡ଼, ଝରଣା ଡେଇଁ ଗଲେ । ଯାଉ ଯାଉ ଦୁଇ ଭଉଣୀ ଥକି-ଗଲେ । ସେମାନେ ଗୋଟିଏ ଗଛ ତଳେ ବସି ହାଲିଆ

ମାରିଲେ । କୁଆ ଗଛ ଡାଳରେ ବସି ଅପେକ୍ଷା କଲା । ତା'ପରେ ପୁଣି ଚାଲିଲେ ।

ଯାଉ ଯାଉ ଆଉ ଗୋଟିଏ ବଣ ପଡ଼ିଲା । ବଣ ଭିତରେ ସୁଆଦିଆ କେନ୍ଦୁ ଗଛ ଥିଲା । କୁଆ ଯାଇ ତାର ଉପରେ ବସିଲା । ଗଛରେ ଫଳ ପୂରିଥାଏ । ଦୁଇ ଭଉଣୀ ତାର ଫଳ ଖାଇ ଖୁସି ହେଲେ ।

କେନ୍ଦୁ ଖାଇବା ପରେ ବଡ଼ ଭଉଣୀକୁ ଶୋଷ କଲା । ସେ ତାର ସାନ ଭଉଣୀକୁ ପାଣି ପାଇଁ ପଠାଇଲା । ସାନ ଭଉଣୀ ପତର ଠୁଙ୍ଗା ଧରି ପାଣି ଆଣିବାକୁ ଗଲା ।

ବଡ଼ ଭଉଣୀ ଅନେଇ ବସିଛି, ବଣରୁ ମହାବଳ ବାଘ ଆସିଲା ଓ ତାକୁ ଖାଇଦେଲା । ସେତେବେଳେ ବଡ଼ ଭଉଣୀ ମନ ଦୁଃଖରେ ଗାଉଥାଏ—

"ମୋତେ ଶୋଷ ଲାଗିଲା
ସାନ ଭଉଣୀକୁ ପାଣି ପାଇଁ ପଠାଇ ଦେଲି ।
ସାନ ଭଉଣୀ ଫେରି ନାହିଁ ।
ବାଘ ଆସି ମୋତେ ଖାଉଛି ।
ଆଆଲୋ ସାନ ଭଉଣୀ,
ଆଉ ଜନମରେ ଦେଖା ହେବ ।"

ବଡ଼ ଭଉଣୀର ଏ ଗୀତର ଲହରି ବଣ ଭିତରେ ଭାସି ବୁଲିଲା ।

ସାନ ଭଉଣୀ ପାଣି ନେଇ ଫେରିଲା । ଦେଖିଲା, କେନ୍ଦୁଗଛ ତଳେ ବଡ଼ ଭଉଣୀ ନାହିଁ । ବଡ଼ ଭଉଣୀର ହାଡ ଓ ମୁଣ୍ଡର ବାଳ ପଡ଼ିଛି । ଠିକ୍ ଏତିକି ବେଳେ ବଡ଼

ଭଉଣୀର କାନ୍ଦଣା ଗୀତ ଭ୍ରସି ଆସିଲା । ସାନ ଭଉଣୀ ସବୁ କଥା ବୁଝିଗଲା । ସେ ଜାଣିଲା, ଭଉଣୀକୁ ବାଘ ଖାଇ ଦେଇଛି ।

ଏତିକିବେଳେ କେନ୍ଦୁଗଛ ମୂଳେ ବାଘର ରଡ଼ି ଶୁଭିଲା । ସାନ ଭଉଣୀ ଜୀବନ ଡରରେ କେନ୍ଦୁଗଛକୁ ଚଢ଼ିଗଲା । ଗଛ ଉପରେ ସାତ ଦିନ ସାତ ରାତି ରହିଲା ।

ସାତ ଦିନ ପରେ ବାଘ ଚାଲିଗଲା ।

ଯୋଗକୁ ଦୁଇଜଣ ଗଉଡ଼ ଯୁବକ ସେଠାକୁ ଆସିଲେ । ସେତିକିବେଳେ ସାନ ଭଉଣୀ କେନ୍ଦୁଗଛରେ ବସି କାନ୍ଦୁଥାଏ । ଦୁଇ ଯୁବକ ତାକୁ ଆଦର କରି ଡାକିଲେ । ସାନ ଭଉଣୀ ଭରସା ପାଇ ଗଛରୁ ତଳକୁ ଆସିଲା ।

ସାନ ଭଉଣୀର ରୂପ ଦେଖି ଦୁଇ ଜଣଙ୍କ ମଧ୍ୟରୁ ଜଣେ ତାକୁ ବିବାହ କରିବାକୁ ମନ କଲା । ସାନ ଭଉଣୀ ରାଜି ହେବାରୁ ସେ ଦୁହିଁଙ୍କର ବାହାଘର ହେଲା ।

—ଦୁଇ—

କିଛି ଦିନ ପରେ ଆଉ ଗୋଟିଏ ଘଟଣା ଘଟିଲା ।

ବଡ଼ ଭଉଣୀର ଖପୁରି ହାଡ଼ରୁ ଗୋଟିଏ ଲାଉଗଛ ବାହାରିଲା । ଲାଉ ଲଟାରେ ବଡ଼ ଲାଉଟିଏ ଫଳିଲା । ତାହା ଗଛରେ ପାଚି ଲାଖି ରହିଲା ।

ପୁଣି ତାର ମୁଣ୍ଡ ବାଳରୁ ବାଉଁଶ ବୁଦା ବାହାରିଲା ।

ସାନ ଭଉଣୀକୁ ବାହା ହୋଇଥିବା ଗଉଡ଼ ଯୁବକ ଓ ତାର ସାଙ୍ଗ ବଣକୁ ଆସିଥିଲେ । ବଣ ଭିତରେ ଲାଉ

ଲଟାରେ ପାଚଲା ଲାଉ ଓ ତା ପାଖରେ ଭଲ ବାଉଁଶ ଦେଖିଲେ । 'କେନ୍ଦରା' କରିବାକୁ ଲାଉ ତୋଳିଲେ ଓ ତାର ବେଣ୍ଟ ଓ ବଇଁଶୀ କରିବାକୁ ବାଉଁଶ କାଟି ଘରକୁ ନେଲେ ।

କେନ୍ଦରା ଓ ବଇଁଶୀ ତିଆରି ହେଲା । ତାକୁ ବଜାଇଲା ବେଳେ ବଡ଼ ଭଉଣୀର ମଲା ବେଳର ଗୀତ ଶୁଭିଲା ।

ଦୁଇ ଗଉଡ଼ ଯୁବକ ଏ ଗୀତ ଶୁଣି କାବା ହେଲେ ।

କିନ୍ତୁ ସାନ ଭଉଣୀ ସେ ଗୀତ ଶୁଣି ସବୁ କଥା ବୁଝି-ଗଲା । ସେ ଜାଣିଲା ବଡ଼ ଭଉଣୀ ତାକୁ ଛାଡ଼ି ରହି ପାରୁ ନାହିଁ । ତାର ପାଖରେ ଲୁଚି ରହିଛି ।

ବାହା ହୋଇ ନ ଥିବା ଗଉଡ଼ ଯୁବକ ସେହି କେନ୍ଦରା ଓ ବଇଁଶୀକୁ ନିଜ ଘରେ ରଖିଥାଏ । ସେ ଦେଖେ, ସେ ନଥିଲା ବେଳେ, କିଏ ଜଣେ ଆସି ତାର ଘର କାମ ସବୁ କରି ଦେଉଛି । ଘର ଲିପା ପୋଛା କରୁଛି । ଜିନିଷସବୁ ସାଇତି ରଖୁଛି । ଦିନେ ସେ ତାର ସାଙ୍ଗ ଘରକୁ ଯାଇ ଏ କଥା କହିଲା ।

ଏହା ଶୁଣି ସାନ ଭଉଣୀ ଭାବିଲା, ବଡ଼ ଭଉଣୀ ନିଶ୍ଚୟ ସେ ଘରେ ଲୁଚିଛି । ବଡ଼ ଭଉଣୀକୁ ଭେଟିବ ବୋଲି ସେ ଯାଇ ଲୁଚି ରହିଲା ।

ସତକୁ ସତ ଦିନେ କେନ୍ଦର ଭିତରୁ ବଡ଼ ଭଉଣୀ ବାହାରିଲା । ସେ ସବୁ ଘର ଲିପା ପୋଛା କଲା ଓ ଜିନିଷ ସଜାଇ ରଖିଲା ।

ସାନ ଭଉଣୀ ଭାରି ଖୁସି ହେଲା । ଲୁଚିବା ଜାଗାରୁ ବାହାରି ଆସି ବଡ଼ ଭଉଣୀକୁ ଜାବୁଡ଼ି ଧରିଲା । କାନ୍ଦି କାନ୍ଦି କହିଲା, ତୁ ଆଉ କୁଆଡ଼େ ଯା' ନାଇଁ । ମୋ ପାଖରେ ରହ ।

ବଡ଼ ଭଉଣୀ ବି ଅନେକ କାନ୍ଦିଲା । କହିଲା, ମୋର ସୁନା ଭଉଣୀଟା ପରି ! ଆଉ କାନ୍ଦନା । ତୋତେ ଛାଡ଼ି ଯିବି ନାହିଁ ।

ଠିକ୍ ଏତିକି ବେଳେ ବାହା ହୋଇ ନଥିବା ଗଉଡ଼ ଯୁବକ ସଙ୍ଗରେ ସାନ ଭଉଣୀର ସ୍ୱାମୀ ସେହି ଘରକୁ ଆସିଲା । ଦୁଇ ସାଙ୍ଗ ନୂଆ ସ୍ତ୍ରୀ ଲୋକକୁ ଦେଖି ବାଇା ହେଲେ ।

ସାନ ଭଉଣୀ ତା' ବଡ଼ ଭଉଣୀର ସବୁ କଥା କହିଲା । ଏହା ଶୁଣି ବାହା ହୋଇ ନ ଥିବା ଗଉଡ଼ ଯୁବକ ବଡ଼ ଭଉଣୀକୁ ବାହା ହେବାକୁ ମନ କଲା । ଦୁହିଁଙ୍କର ଖୁସି ରାଜିରେ ବାହାଘର ହେଲା ।

ଦୁଇ ଭଉଣୀ ଭାରି ଖୁସି ହେଲେ । ସେମାନେ ପାଖରେ ପାଖରେ ରହିଲେ । ସେ ଦୁହେଁ ପୁଅ, ଝିଅ, ନାତି ନାତୁଣୀ ଦେଖିଲେ । ସ୍ନେହ ଦୁହିଙ୍କୁ ଏକାଠି କଲା ।

